# ମନ ନିରିମଳ
# ଗାଆଁ ପରିମଳ


ଲେଖକ :

ଡକ୍ଟର ଜୟନ୍ତ କୁମାର ଦାସ




# ମନ ନିରମଳା
# ଗାଆଁ ପରମଳା

ଲେଖକ :

ଡକ୍ଟର ଜୟନ୍ତ କୁମାର ଦାସ

ପ୍ରକାଶକ :

**ନିଶାମଣି ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ :

୧୯୮୭

ମୁଦ୍ରାକର :

ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ

**ରେଖା ପ୍ରେସ**

ବାଙ୍କିବଜାର, କଟକ-୭୫୩୦୦୯

[illegible] .00

ମୂଲ୍ୟ— [redacted]

# ହାତ ଅଳସେ ନିଶବଙ୍କା

ସେ ଦିନ ଗାଁରେ ହୁଲୁସ୍ଥୁଲ ।

ଅଗଣି ବେହେରାଙ୍କ ଗାଈଟା ଶରଆ ଉପରେ ମାଡ଼ିଗଲା । ସିଏ ଚଉପଟାଙ୍ଗ । ଗାଈର ଖୁରା ମାଡ଼ରେ ଟୋକାଟା ଖଣ୍ଡିଆ ଖାବରା ହୋଇଗଲା । ଗାଁର ଲୋକମାନଙ୍କର ପାଟିଭୁଣ୍ଡ ଦେଖିବ କିଏ ? ତାକୁ ସାଷ୍ଟାମ କରିବା ଦୁରେ ଥାଉ, ସମସ୍ତେ ଅଗଣିକୁ ଦୋଷିବାରେ ଲାଗିଛନ୍ତି । ଗାଈଟାକୁ ସିଏ, ଗାଁ ଦାଣ୍ଡରେ ବାନ୍ଧିଥିଲା କାହିଁକି ?

ଶୁଣି ଶୁଣି ସିଏ ବିଚରା ବ୍ୟସ୍ତ ହୋଇଗଲାଣି । କଣ ବା କରିଥାନ୍ତା ? ସିଏ କଣ ଗାଈକୁ କହି ଦେଇଥିଲା ଏ କାମ କରିବାକୁ ? ଗାଈଟା ତାର ଓଲେଇ, କିଛି ଓଲମ ବାଲମ ହେଲେ ସିଏ ନରକ ଯାଏ । ସେଥିକୁ ସିଏବା କରିବ କଣ ?

"କଣ କରିବୁ ?" ଯଦୁଆ ନନା ଉଠୁଁକି ଆସିଲେ । "ଗାଈଟା ଓଲେଇ ଯଦି ଜାଣିଥିଲୁ ତାକୁ ସର୍ବସାଧାରଣଙ୍କ ଚଲା ବାଟରେ ବାନ୍ଧୁଥିଲୁ କାହିଁକି ? କରେ ତୋ ନଅାଁକୁ ସିନା ତୁ ଅଣ୍ଟିରେ ଲୁଚେଇ ରଖିବୁ, ଆମେ ତାକୁ ସମ୍ଭାଳିବୁ ନାଁ କଣ ?"

ଅଗଣି ନଉନ ହେଇ କହିଲା, "ମୋର ଦୋଷ, କାଇଲି ମୋ ବାପ'ର, ହେଲା ମାନିଲି । ତମର ଗାଈଗୋରୁ ଏ ଦାଣ୍ଡରେ ବନ୍ଧା ହେଉନାହିଁ ? ସେମାନେ ସେଥିପାଇଁ କଣ ଲାଇସିନ ପାଇଚନ୍ତି ? ଆଉ ଏ ଶରଆ ତ ଚାଲିଲା ଶଗଡ଼ରେ ହାତମାରି ଦିଏ, ସିଏ କିଛି ଚଗଲାମି କରିଥିବ, ଗାଈଟା ତରକି ଯାଇଛି ।"



"ଚୁପ୍ ! ଚୋରୀ ତା ଉପରେ ପୁଣି ସୀମା ଜୋରୀ ?" ଖତୁରୀ ଆଉ ସମ୍ଭାଳି ପାରିଲା ନାହିଁ । ଖରଅଁ ଘର ତାଙ୍କର ମହାପ୍ରସାଦଆ ବନ୍ଧୁ ।

"ରଖ ରଖ ତୋ ତୋଡ଼ । କାଲିକା ନଣ୍ଡି ଶିରମେ ଜଟା, ଏଠି ଆସି ମତେ ଜବାବ ଦେଲା ।" ଅଗଣି ବିଗିଡ଼ିଗଲା, "ପାରୁତ ଯଦି ଗାଁ ଦାଣ୍ଡରୁ ଗୁହାଳ ଉଠେଇ ଦିଅ, ଗୋରୁ ଖୁଣ୍ଟି ଉପାଡ଼ି ଦିଅ । ଦାଣ୍ଡ, ଦାଣ୍ଡପରି ଶୋଭା ପାଇବ, ଆଜ୍ଞା ମତେ ତଆରିଲେ ହବ କଣ ?"

ସବୁରି ମରମକୁ ବାଧିଲା ଭଳି କଥା ।

ଗାଁର ଦାଣ୍ଡ, ରାଜରାସ୍ତା ତ ନୁହେଁ, ଅଳିଆ ଗଦା । କିଏ ସେଠି ଖୁଣ୍ଟ ପୋତି ଗାଈ ବାନ୍ଧୁଛି, କିଏ ବା ଗୁହାଳରୁ



ମଡ଼େଇ ଆଣିଛି । କାହାର ଖତଗଦାଟି ଏଇ ଗାଁ ଦାଣ୍ଡରେ । ହାଡ଼ିଆ ମା ତା'ର ବୟସ ଥିଲା ଦିନୁ ଏଇ ରାସ୍ତାରେ ଘଷି ପାରୁଛି ।

ଏ ସବୁ ସାଙ୍ଗକୁ ସିଙ୍ଘ ଗଛର ବାଡ଼ କୋଉ କମ କି ? ବେଳ କାଳ ଉଣ୍ଡି ସିଏ ବି ଗାଁ ଦାଣ୍ଡକୁ ଖଟଣ୍ଡ ଲେଖାଏଁ ଚଳୁ କରିବାରେ ଲାଗିଛି । ମାଲିକ ବିଚରା ଜାଣିବା ଆଗରୁ ସିଏ ହାତେ ଖାଇ ସାରିଲାଣି ?

ଯୋଉ ପାଞ୍ଚ ହାତ ବା ଅଛି, ଏଠି ସେଠି ହେଁସଟାଏ ପକେଇ ଦେଇ କିଏ ସେଠି ଉସୁଆଁ ଧାନ ଶୁଖେଇ ଦେଲାଣି । ଦାଣ୍ଡରେ ଚାଲିବା ଭାରି ଅସୁବିଧା । କେତେ-ବେଳେ ଗୋଡ଼ଚପି ଚାଲିବାକୁ ହବତ କେତେବେଳେ ନାକ ।

ସମସ୍ତେ ହାଇରାଣ, ସବୁରି କଲବଲ । ସଭିଏଁ ଦେଖୁଛନ୍ତି । କାହାର ପାଟି ଫିଟୁନେଇ । କେହି ମୁଣ୍ଡକୁ ସେକଥା ନଉନେଇଁ । କିଏ ବା ଭାବିବ ସେ କଥା ? କାହାର ବେଳଅଛି ଏ ଶୁଖିଲା କଥା ମୁଣ୍ଡରେ ପୁରେଇବାକୁ ?

"ସେ କଥା ନୁହେଁ ଯେ ବିଲେଇ ବେକରେ ଘଣ୍ଟି-ବାନ୍ଧିବ କିଏ ?" ଯଦୁଆ ନନାଙ୍କର ପାଟିରୁ ସତକଥା ବାହାରି ପଡ଼ିଲା । "ଗାଁର ଅଧେ ଲୋକ ପରା ଦାଣ୍ଡକୁ ମୌରସି ସମ୍ପତ୍ତି କରି ପକେଇଚନ୍ତି । ଖଣ୍ଡେ ଖଣ୍ଡେ ମାଡ଼ି-ବସିଚନ୍ତି । ଆଁ'ଲେ ମୁତୁରୀ ଶୋଇବା, ତୁତ ମୁତୁରୀ, ମୁଁ ତ ମୁତୁରୀ ହେଁସ କାହିଁ ପାଇଁ ଧୋଇବା ?"

"ତୁ ମୋ ମୁଣ୍ଡରେ ଅଠାବୋଳିବୁ, ମୁଁ ତୋ ମୁଣ୍ଡରେ ଅଠାବୋଳିବି, ସେଥିରେ କ'ଣ କାମ ହବ ?" ଅଗଣି ଏତେବେଳକୁ ସାହାସ ପାଇ ଗଲାଣି । "ଆସ ସମସ୍ତେ ମିଶି ଦାଣ୍ଡ ସଫା କରିଦବା । ତମେ ରାଜି ହେଲେ, ମୁଁ ଆଗ ମୋ ଗାଈବନ୍ଧା ଖୁଣ୍ଟ ଉପାଡ଼ି ଦେବି ।"

"ମୁଁ ପରା ଗଛର ଦଉଡ଼ି କଣ୍ଠା । ମୋର ଲଗା ନାହିଁ ନା ପଘା ନାହିଁ ।" ଯଦୁଆ ନନା ଜବାବ ଦେଲା, "ଆମର ବଡ଼ ବଡ଼ଆମାନେ ସବୁ ପରା ଏଥେରେ କଳି ଭେଇଚେ ।"

"କଣ ମିଳିବ ତମର ଏ କଥା କଣ୍ଠା କଟିରୁ କହିଲ ?" ଶତ୍ରୁରା ଶୁଣି ବକ୍ତ ହେଇଗଲାଣି, "କଥାକୁ ମାଜିଲେ ମୋଟ ହୁଏ ସେଥିରୁ କ'ଣ ସମାଧାନ କିଛି ମିଳେ ?"



# ମନଥିଲେ ଉପାୟ ଆସେ

"ଗାଁ ଦାଣ୍ଡଟା ଏଥର ସଫା କରିଦବା ।" ନନ୍ଦ ଭାଇଙ୍କର ଏତିକି କଥା ରେ ପିଲାଏ କାନଟେକି ଶୁଣିଲେ । ଗାଁ ପରିମଳ ଧୋବା ଭୂଠରୁ ଜଣାପଡ଼େ ବୋଲି ସମସ୍ତେ କହନ୍ତି । ଏ ଗାଁ ଦାଣ୍ଡର ଅବସ୍ଥା ଦେଖି ବାହାର ଲୋକ କ'ଣ ଭାବୁଥିବେଟି, ଏଠି କ'ଣ ମଣିଷ ରହୁଛନ୍ତି ?"

"କିଛି ନୁହଁ ଖାଲି ଅଳସୁଆମି । ଦଣ୍ଡ ଖଟେଇ କାମ କରିବା ପାଇଁ ଇଚ୍ଛା ନାହିଁ" ଜଗୁଆ କହି ଉଠିଲା, "ଏତେ ବଡ଼ ଛୁଟିଟା ପଡ଼ିଚି, ସମସ୍ତେ ଏକାଠି ବାହାରି ପଡ଼ିବା, କାମ ପାଞ୍ଚ ଦିନରେ ସରିବ ।"

ଏ କଥା ଆଉ ପଚାରିବାକୁ ଅଛି ? ନିଳା କହି ଉଠିଲା, "ଏତେ ଦିନକେ ଗୋଟାଏ ଭଲକାମ କଲୁ । ତାସ ଖେଳି, ପାଲି ପକେଇ, ନହେଲେ ତୋଟା ବୁଲି ବେଳ କଟୁଥିଲା ।"

କିଏ ଦେଉଳର ମୂଳଦୁଆ ବି ପଡ଼ିନି, ତୁ କହିଲୁଣି ଠାକୁର ଆମେ ପ୍ରତିଷ୍ଠା କରିଦେଲୁ । କାମ ହେଲାଣି କୋଉଠି ? ଗୁରିଆ ଚେତାଇ ଦେଲା, "ଏମିତି ବଲୁଆ ବିଚାର କଲେ କ'ଣ କାମ ହୋଇଯାଏ ? ଫୁଲକା ଉପରଲୁ ତ ଏ ପର୍ଯ୍ୟନ୍ତ ଆସିନି, ଆସ ଦେଖ କ'ଣ ହଉଚି ?"

ଗୁରିଆର କଥା ସରିନେଇ ପୁନିଆ ଚିହିଁକି ଆସିଲା, "ଆସିନୁ ମାନେ କ'ଣ କାମ ହବ ନାହିଁ ? ଆଜି ଆମେ ଏକାଠି ହେଇ ଯାହା ଠିକ୍ କରିବୁ, ସେଥିରୁ କ'ଣ ଓହରି ଯିବୁ ?"

"ନାଇଁ, ସେ କଥା ନୁହେଁ ଯେ ତମେ ସବୁ ବରୁଡ଼ ବସାକୁ ଢେକା ମାରୁଚ, କାମୁଡ଼ା ସହ୍ୟ ପାରିବଟି ?" ଗୁରିଆ ବୁଝେଇବାକୁ ଚେଷ୍ଟା କଲା ।

"ଗୁରିଆ ଭାଇର କଥା ତୁ ବୁଝି ପାରୁନୁରେ ପୁନା, "ଶତ୍ରୁର କଥାର ଖିଅ ଖୋଲଲା, 'କାହାର ପିଣ୍ଡା ଦାଣ୍ଡକୁ ଅଧେ ମାଡ଼ିଆସିଚ, କିଏ ଗୁହାଳ ରାସ୍ତାରେ ତୋଳି ଦେଇଚ । ଗୋବର ଗଦା ବି କାହାର ଦାଣ୍ଡରେ । ନୁଖୁରୀ ଭାଇଙ୍କର ଚାଳତ ଦାଣ୍ଡକୁ ମାଡ଼ି ଯାଇଚ, 'ସେଥିରେ ଆମେ ଯେତେ-ବେଳେ ହାତ ମାରିବା, ଆମର ଚୁଟି ପିଠି ରହିବଟି ?"



"ଆମେ କ'ଣ ଅନ୍ୟାୟ କରୁଚୁ, ନା ନିଜ ପାଇଁ କିଛି କରୁଚୁ ? ସେମାନେ ବଗିଡ଼ିବେ କାହିଁକି ?" ନୀନା, ସହରରେ ପଢ଼ୁଚିତ ସିଏ ଏ ଗୁଡ଼ାକ ବୁଝି ପାରୁ ନ ଥିଲା ।

ଜଗୁଆ ଆଉ ଧୈର୍ଯ୍ୟ ଧରି ରହିପାରିଲା ନାଇ । "ତମେ ସବୁ ଖାଲି ଦେଖ, କାଟିକରି ଯଦି ସଫା କରି ନ

ଦେଇଚ—ବାଲା ଡାସଙ୍କର ପିଣ୍ଡାଟା ବ କଟାଯିବ । ଆମର ଖଡଗଦା ବ ଦାଣ୍ଡରୁ ଉଠିବ ।”

ଜଗୁଆର ହୁରୁମା ପଣ କାହାକୁ ଅଜଣା ନାହିଁ । ଅନ୍ୟ ମାନଙ୍କର ହଲକ ଶୁଖି ଯାଉଚ । କ’ଣ ହବ, କେମିତ ହବ ସେଇ କଥା ପଡ଼ୁଚ ।

“ଆମେ ନ କରବା କାମକୁ ହାତକୁ ନଉଚୁ ।” ନରଭାଇ ଏ ଗୋଳମାଳ ଭିତରେ ପାଟି ଫିଟେଇ ନ ଥିଲେ । ତାଙ୍କର କଥା ଆରମ୍ଭ ହେଲାପରେ ଅନ୍ୟମାନେ ସବୁ ଚୁପ୍ ହେଇଗଲେ । “ଏବେ କେହୁ ଆମକୁ ଫୁଲ-ଚନ୍ଦନ ଦେଇ ପୂଜା କରବେ, ସେ କଥା ମୁଁ କହୁନେଇଁ, କାମ ହେଇଗଲେ କାନ୍ତ ତମେ ସମସ୍ତେ ସାଙ୍ଗେ ସାଙ୍ଗେ ସନା ପୁଅ ହେଇଯିବ ।”

“ଏବେ ତ ଟାହିଟାପରା କର ଯାଚ୍ଛା ତା’ କହିବେ” ଗୁରଆ ଆଗତ ବଧାତା ପର ଆରମ୍ଭ କରିଦେଲା । “ଆଉ ଯଦବା ଅଧାରୁ କାମ ଛାଡ଼ ଦେଇ, ସବୁଯାକ ହାଣ୍ଡିଆ ହବ । ରାସ୍ତାରେ ବାଟ ବ ଚାଲିପାରବ ନେଇଁ ।”

ଆମର ସବୁ ହାତ ଅଲସେ ଜାଣବଙ୍କା, ଥରେ ହାତରେ କଟୁରୀଟାଏ ପଡ଼ିଲେ ଯଦ ସବୁ ସଫା ନ ହେଇ ଯାଇଚ । ଜଗୁଆ ତଥାପି ସହଜ ହଉ ନଥେଲା । “ତମେ ସମସ୍ତେ ଛେଲୁଆ, ନଈ ନ ଦେଖୁଣୁ ନଙ୍ଗଳା ହେଇ ପଡୁଚ । କରେ ଯୋଡ଼ା ପାଖରେ ଘୋଡ଼ା ସରହବ, ଆମେ ଏକାଠି ହେଇ ବାହାରଲେ କାଏ ଭଲା ଆମ ପାଖ ମାଡ଼ବ ?”

“ଆମେ ସବୁ ମଇଁଷି ଶିଙ୍ଘ, ଦେଖିଲା ବେଳକୁ ସିନା ଫଟା କାନ୍ତ ଜୁଝିଲା ବେଳକୁ ଗୋଟା ।” ନାନା କହିଲା,

"ଏ କାମକୁ ଯଦି ଆମେ ନ ପାରିବା, ତାହେଲେ କେହି ଆଉ କରି ପାରିବେ ନାହିଁ ।"

"ନପାରିବା କଥା ମୁଁ କହୁନାହିଁ ଯେ, ନହିଁଆ ଗ୍ରାମ ବୁଝାଇ ଦେଲେ କେହି ଏକଥା ନେଇ ବଡ଼ମାନଙ୍କ ପାଖରେ କଳି କରିବ ନାହିଁ, ଦରକାର ପଡ଼ିଲେ ନିଜ ଚିଠି ଦେଖାଇ ଦବ ତାହେଲେ ଯାଇ କାମହବ, ଆଉ ନଷ୍ଟ ହବ ।"

ତାପରେ ବର୍ଣ୍ଣର ପଡ଼ିଲା କାମ କେମିତି ହବ କିଏ କ'ଣ କରିବ ? କୋଡ଼ି, କୋଦାଳ ଗାଣ୍ଡୁଆ ଶାବଳ, ଗଇଁତି କୋଉଠୁ ଆସିବ, କିଏ କ'ଣ ଆଣିବ ?

ମନଥିଲେ ଉପାୟ ଆପେ ଆପେ ଆସିଯାଏ । ଦେଖା-ଗଲା ସେ ସବୁର ଅଭାବ ହବନାହିଁ ।

————

## ଆଗୁହୋଇବ ସାବଧାନ

"ବଡ଼ ବଡ଼ ଗଲେ ଫସର ଫାଟି, ସାନ ଆସିଗଲେ ବେସର ବାଟି ।" ରାମରଥଙ୍କର ଦପାଟିରୁ ପାନପିକର ଧାର ବୋହି ଯାଉଥିଲା, ତାଙ୍କୁ ଚୁଲୁକୁଲେଙ୍କ ସିଏ କହୁଥିଲେ, ଶୁଣିଲଣି ଟୋକାଏ ମାତିଚନ୍ତି କୁଆଡ଼େ ଡାଣ୍ଡିସଫା କରିବେ ?

ଲାଗନ୍ତୁ, ଲାଗନ୍ତୁ ପିଲାଏ । ଦବାକର ବାବୁ ନିଜେ ବିଶ୍ୱାସ କରି ପାରୁ ନଥିଲେ, "ଦିନା କେତେ ପାଣିବାଡ଼େଇ ହାଲିଆ ହେଇଗଲେ ବଲେ ଚୁପ୍ ହେଇଯିବେ ନାହିଁ, ବେସ୍ତ କାହିଁକି ହଉଚ ?"

"ଯିଏ ବାଟରେ ଗାଈ ବାନ୍ଧୁଚି, ତାର ଖୁଣ୍ଟ ଉପାଡ଼ି ଦେବେ । ଯାହାର ବାଡ଼ ମାଡ଼ି ଆସିଚି ତାକୁ କାଟି ସଫା

କରି ଦେବେ । ଦାଣ୍ଡପିଣ୍ଡା ରାସ୍ତାକୁ ଯିଏ ମଡ଼େଇଚି ତାକୁ ଛାଡ଼ି ଦେବେ ।” ରଥେ ଦିବାକର ବାବୁଙ୍କ କଥା ବୁଝି ପାରିଲେ ନେଇଁ । ଦଇବ ବେଠିଆଏ, ଦୁଃ-ଦୁଃ ଦେଖିଚନ୍ତି, ଫାନ୍ଦ ଦେଖି ନାହାନ୍ତି ପରା ।’,

“ଦେଖ ରଥେ, ପାଣି କୁଆଡ଼କୁ ଯାଉଚି । ନଈ ନଦେଖୁଣୁ ତମେ ଏମିତି ନଙ୍ଗଳା କାଇଁକି ହେଇ ପଡ଼ୁଚ ?” ସିଏ ରଥଙ୍କୁ ବୁଝେଇବାରେ ଲାଗିଥିଲେ । “କଉଁ ପୁରୁଷ ପୁରୁଷ ଧରି ଲୋକେ ଏ ଗାଁ ଦାଣ୍ଡକୁ ଏମିତି କାମରେ ଲଗେଇ ଆସୁଚନ୍ତି । ତାକୁ ଏଇ ଟଙ୍ଗୁଡ଼ି ବାବୁରୀ ପଲେ ଆସି ବନ୍ଦ କରିଦେବେ ?”



ରାମ ରଥେ ଆଉ ସମ୍ଭାଳି ପାରିଲେ ନାଇଁ, ବନ୍ଦ କରି ଦେବେ କ’ଣ, କରିଦେଲେ ଜାଣ ? ଆପଣତ କିଛିବାଟ କରୁ ନାହାନ୍ତି, କାଲି ସକାଳୁ ସେମାନେ ସତକୁସତ ଗୁହାଳ ମୋର ଛାଡ଼ିଦେଲେ, “ଆମେ ସବୁ ଦାଣ୍ଡ ମଝିରେ ଠିଆ ହେଇ-ଯିବୁ ଯେ ?”

"ଜାଣିଆ ହେଲେ ହବ କଣ ? ତମେ କଣ ଏକୁଟିଆ ହଇରାଣ ହବ ? ଗାଁର ପରା ଅଧେରୁ ବେଶି ଲୋକ ଏଥିରେ ପଡ଼ିବେ । ଦବାକରବାବୁ ଉଥନ୍ତୁ ଆମର ବୋଧ ଦେଉଥିଲେ । ଯୋଉ ଟୋକାଏ ଏଥେରେ ମାତିଚନ୍ତି ସେମାନଙ୍କର ଦାଣ୍ଡଦିଣ୍ଡା ପରା ଆଗ କଟା ହବ ? ତାଙ୍କର ଘରେ ବଳେ ମାଡ଼ ପଡ଼ିବ ନେଇଁ ତମେ ଦେଖିବ ଅପଲବେଳେ କଣ ହବ ?"

ଏ କଥା ଏମିତି କେତେବେଳ ଯାଏ ଚାଲିଥାନ୍ତା କେଜାଣି, ଗୁରୁଆ ହେଇ ବାଟ ଦେଇ ପସି ଆସିଲା, ଏମାନେ ଧଉକିନା ଚୁପ ପଡ଼ିଗଲେ । ହୁରୁମା ଟୋକାଟା, ପାଟିରେ ଯେମିତି ତାର ବାଡ଼ ବତା ନାଇଁ । କଣ ଯଦି ଭଲମନ୍ଦ ପାଟିରୁ ବାହାରିପଡ଼େ ମହତଟା ଏଇଠି ବାରଣ୍ଡା ଦକଡ଼ା ହେଇଯିବ ।"

ଗୁରୁଆ କାନରେ କଥାର ଛିଟିକା କିଛି ପଡ଼ିଥେଲା, ସିଏ କଣ ଛାଡ଼ନ୍ତା, ପଚାରିଦେଲା, "କଣ ହେଲାକି ନନାଏ ? ଗୋଟାଏ ଜବର କଥା କଣ ପଡ଼ିଥିଲା, ମତେ ଦେଖି ଠପକିନା ବନ୍ଦ ହେଇଗଲା ।

ଗଭୀର ଜଳର ମାଛ ଆମର ଦବାକର ବାବୁ, ଏଇଠି ଧରା ପଡ଼ିଯିବେ ? ସମ୍ଭାଳି ନେଲେ ଏଇ ପ୍ରଥମ ମାଡ଼କୁ, ପାଟିରୁ ତାଙ୍କର ବାହାରି ପଡ଼ିଲା, "ତମେ ସବୁ ମିଶି କଣ ଗାଁ ଦାଣ୍ଡ ସଫେଇ କରିବ ପରା ?

"ସେଥିରେ କେମିତି ଖଲବ ପସିବ, ସେଇଟା କେମିତି ବନ୍ଦ ହବ, ସେଇ ବିଚାର ପଡ଼ିଥେଲା ।" ଗୁରୁଆ ତାଙ୍କୁ ଚଡ଼େଇ ଦେଲା ।

ନଶୁଣିଲା ପରି ଦିବାକର ବାବୁ କହି ଚାଲିଥିଲେ "ଏତେ ଦିନରେ ପିଲାଏ ଗୋଟାଏ ଭଲକାମ କରୁଛନ୍ତି, ତାଙ୍କ ପଛରେ କେମିତି ଆମେ କାନ୍ଧ ଲଗେଇଦବା ଏଇ କଥା ପଡ଼ିଥିଲା । କଣ କହୁନା ରଥେ ?"

ତା ନୁହେଁ ଆଉ କଣ ?" ଗାୟକ ସାଙ୍ଗରେ ପାଳିଆ ପରି ରଥେ ଆମର ସାଙ୍ଗେ ସାଙ୍ଗେ ଓଲଟି ପଡ଼ିଲେ । "ଯାହା ଆମେ ପାରି ନଥିଲୁ ପିଲାଏ ସେକଥା ଆଜି କରିବାକୁ ଯାଉଚନ୍ତି, ଇଏ କଣ କମ କଥା ? ଆମର ଏ ଗାଁ ଦାଣ୍ଡ ଯେମିତି ଅଳିଆ ହୋଇ ପଡ଼ିଚ, ସାପ ବେଙ୍ଗ ସେଠି ଘର କରିଚନ୍ତି, ରାତିରେ ସେଇବାଟରେ ଯିବାକୁତ ଆମେ ଭୟ ପାଇଯାଉଚୁ ?

ଏବେ ଯା' ହେଉ ତମେ ସବୁ ଲାଗିପଡ଼ି ଗୋଟାଏ ନହବା କାମ କରିବାକୁ ଯାଉଚ । ଆମେ ତମ ପଛରେ ଅଛୁନା ? ଦିବାକରବାବୁ ଗୁରିଆର ପିଠି ଥାପୁଡ଼େଇ ଏକଥା ଆରମ୍ଭ କରିଥିଲେ । "କେତେ ଦିନର ଅଳିଆ ଦାଣ୍ଡରୁ ସଫା ହୋଇଯିବ ?

'ସେ କଥା ଆଉ ପଚାରିବାକୁ ଅଛି ?' ରାମା' ନା କାହିଁକି ପଛା ପଡ଼ିବେ ? "ଆମେ ଗାଁ ଦାଣ୍ଡରେ ନିର୍ଭୟରେ ଆଖିବୁଜି ଚାଲିବୁ ।"

ତା ହେଲେ ତ ଭଲ ହେଲା, ଆପଣଙ୍କ ପରି ମୁରବି ମାନେ ଯଦି ଆମ ପଛରେ ରହିବେ, ଆମେ ହିମାଳୟ ପର୍ବତ ବି ଉଠାଇ ଆଣିବୁ, ଇଏବା କିବା କଥା ?" ଶୁଆପରି ଘୋଷିଥିବା କଥାକୁ ଗୁରିଆ ଅଜାଡ଼ି ଦେଲା । କାଲି ସକାଳୁ

ଆମେତ କାମ ଆରମ୍ଭ କରୁଚୁ । ଆପଣମାନେ ସେଠି ଟିକେ ରହିଲେ ଭଲ ହୁଅନ୍ତା । ଗୁରିଆ ବଡ଼ ବିନମ୍ର ସ୍ୱରରେ କହିଦେଲା ।

"ରହିଲେ ଭଲ ହୁଅନ୍ତା ନା କଣ କହୁଚ ରଥେ ।" ବିଦ୍ୟାକରବାବୁ ରାମନାଙ୍କ ମୁହଁକୁ ଚାହିଁ ପଚାରିଦେଲେ ।

'ଇଏତ ଅତି ଉତ୍ତମ କଥା ।' ନନାଏ ଉତ୍ତର ଦେଲେ, "କିନ୍ତୁ କଥା କଣକି ମୁଁ କାଲି ଟିକିଏ ମଦନପୁରକୁ ଯିବି, ସେଠି ଗୋପୀବାବୁଙ୍କ ଘରେ ତାଙ୍କ ବାପାଙ୍କର ଶ୍ରାଦ୍ଧ । ବାଜରା ପାଞ୍ଚକୋଶ ବାଟ, ସକାଳୁ ନଗଲେ କଣ ପହଞ୍ଚି ହବ ?

ହେଲା ମ, ନନାଏ ନରହନ୍ତୁ ପଛକେ, ତାଙ୍କର ଆଶିର୍ବାଦତ ଆମ ପଛରେ ଅଛି ? ଆପଣ ମଉସା ରହନ୍ତୁ ଟିକିଏ, ଆମର ସାହାସ ବଢ଼ିଯିବ ।" ଗୁରିଆ ତାଆଡୁ କଥାରେ ଖଇଚା କାଢ଼ିନେଇ, ଏବେ ସିଏ ଆଉ ଯା'ନ୍ତୁ କୁଆଡ଼େ, ଅକଳରେ ପଡ଼ିଗଲେ । "ଠିକ୍ ଅଛି, ଅସୁବିଧା ନହେଲେ ମୁଁ ନିଶ୍ଚୟ କାଲି ତମର ଗାଁ ସପେଇରେ ଯୋଗ ଦେବି ।" ପଛରେ କରିଥିବା ସବୁଯାକ ବାଲୁଆ ବାଚାର ଆଗରେ ପଡ଼ି ବଦଳିଗଲା ।

ଇଆଡେ ବାଲା ଦାସଙ୍କ ଘରେ ବି ତୁମୁଳକାଣ୍ଡ । ବାପ-ପୁଅଙ୍କ ଭିତରେ ଲାଗିଚି ଝଟାପଟା କେହି ଟିକିଏ ପଛକୁ ହଟିବାକୁ ରାଜି ନୁହନ୍ତି ।

"କୁଳାଙ୍ଗାର, କୋଉଠିକାର ଖାଇବ ମୋର, ଗାଇବ ମୋ ବଇରୀଙ୍କର ।" ବାଲାଦାସ ରାଗରେ ପାଚି ଯାଇଥିଲେ । ତାଙ୍କର ଦୁ'ପୁଅ ସନିଆ, ଧନିଆ ବି ଏଇ ଦାଣ୍ଡ ସପେଇରେ

ବାଇ । "ଭଲଗତ ଅଛନ୍ତ ସେ ଫେଚକାମି ଛାଡ଼, ସୁନାପୁଅ ପରି ଘରେ ବସ ।"



"ଗାଁ ସାରା ସମସ୍ତେ କହୁଚନ୍ତି, ଆମ ପିଣ୍ଡା ଦାଣ୍ଡକୁ ମାଡ଼ଯାଇଚ । ସେଇଟା ଶୁଣିବାକୁ ଭଲ ଭଲଲାଗୁଚ ନା କଣ ?" ଘନଆ ଆଉ ସମ୍ଭାଳି ପାରିଲା ନାହିଁ ।

"ତମେ ସବୁ ଆସି ପିଣ୍ଡାକୁ ଡାଡ଼ି ପକେଇବ ପରି ? ଏମିତି କେତେ କୁକୁର ଭୋକୁଚନ୍ତି, ଏଇଆକୁ ମୁଁ ଖାତିର କରିଚ ?" ଦାସେ ଆଉ ସମ୍ଭାଳି ପାରୁ ନଥିଲେ, ତାଙ୍କର ପୁଅ ମୁହଁ ଉପରେ ଜବାବ ଦଉଚ, କି କାଳ ହେଲାଟି । "ମାପ କଲେ ଯଦି ବାହାରିବ, ସେମାନେ ଛାଡ଼ିଦେବେ । ସର୍ବ ସାଧାରଣଙ୍କ ଯାଗାକୁ ଆମେ କାହିଁକି ମାଡ଼ିବସିବା ?" ଘନଆ କହୁଥିଲା ।

"ବୁଢ଼ି, ଖବରଦାର ଫେରିବାର ଯଦି ସେ କଥା କହିବ, ମୋର ଦିନେକୁ ତମର ଦିନେ । ପାଠ-ଶାଠ ତ ହେଲାନାହିଁ, ଏଇ କାମ କରି ବାପର ନାଁ ପକେଇବ ? ମୁଁ

ଯଦି ଦାଣ୍ଡକୁ ମାଡ଼ିଯାଇଥିବ, ତାକୁ ସାଙ୍ଗରେ ନେଇ ମଶାଣିକୁ ଯିବ ପରା ?" ସେ ତଥାପି ସମ୍ଭଳା ପଡୁ ନଥିଲେ ।

ଆମର ସେ ଯାଗା ଲୋଡ଼ାନାହିଁ । ଦାଣ୍ଡରେ ଘାଟରେ ଲୋକଙ୍କର ଟାହି ଟାପରା କିଏ ଶୁଣିବ ? ଏଇ ବାଟ ଦେଇ ଗଲାବେଳେ ଲୋକେ ଯାହା କହୁଚନ୍ତି, ସେଥିରେ ପରା ଋଷି ବାଳଛୁଣ୍ଡେଇ ମରିବେ ?" ଘନିଆ ତଥାପି ଛାଡ଼ିବା ଜନ୍ତୁ ନୁହେଁ ।

ଯାଅମ ଏମିତ କେତେ ଦେଖିଛୁ, ହଇରେ ତତଲା ପାଣିରେ କୋଉଠି ଘର ପୋଡ଼ିଲାଣି ?" ଦାସେ ରାଗରେ ପାଚି ଗଲେଣି ।

ଶତ୍ରୁ ସେଇ ବାଟଦେଇ ଯାଉଥିଲା । ବାପ-ପୁଅଙ୍କର ଏ ଯୋଉ କଥା କଟାକଟି ସେଥିରେ ସିଏ ଟିକେ ଅଟକିଗଲା ।

— — — —

## କିବା ଅସାଧ୍ୟ ମହିତଳେ

ଗାଁର ଦାଣ୍ଡ ସଫାହବ, କାହାକୁ ରାତିରେ ନିଦଅଛି ? ଫରଚ୍ ହେଇନାହିଁ ପିଲାଏ ସେଦିନ ରୁଣ୍ଡ ହେଇ ସାରିଲେଣି ।

ଯେତେ ହେଲେ ଚୋଟାଏ ନୂଆ କାମତ, ଏତେ ଦିନ ଧରି ଯାହା ଦାଦାମାନେ ପାରି ନଥିଲେ, ପିଲାମାନେ ସେଥିରେ ଅଣ୍ଟାଭିଡ଼ି ବାହାରିଚନ୍ତି, ଲୋକ ଖାଲି ଥାଟ ପଟାଳି ଭାଙ୍ଗୁଚନ୍ତି, କାମ କରିବାକୁ ଯେତେ ଅଛନ୍ତି, ଦେଖଣାହାରୀ ତାଠୋଉଁ ବେଶି ।

ଦିବାକର ବାବୁ ବି ସକାଳୁ ଜାମାଯୋଡ଼ ହେଇ ହାଜର । କଥା ଦେଇଥିଲେ ଭାଙ୍ଗନ୍ତେ କେମିତ ? ବଷା

ସୁଆଡ଼େ ଛତାକୁ ସିଆଡ଼େ ଦେଖେଇ ଦେଲେ ବାହାରେ ପାଣି ପଡ଼ିବ ନେଇଁ । ସିଏ କଣ ଏଡ଼େ ବୋକା ଯେ ସୁଅ ମୁହଁରେ ଠିଆହୋଇ ଠେଲା ଖାଇବେ ?

ପିଲାଙ୍କ ଦଳ ଆଗକୁ ମାଡ଼ି ଚାଲିଲା, ବାଟରେ ଖୁଣ୍ଟ ପୋତା ହୋଇ ଗାଈ ବନ୍ଧା ଯାଉଥିଲା । ତାକୁ ଉପାଡ଼ି ସେମାନେ ଖାଉନ୍ଦ ଜାଗାରେ ପୋତି, ଗାଈ ଗୋରୁଙ୍କୁ ବାନ୍ଧି ପକେଇଲେ ।

କାହାର ପାଟିରେ କଥା ନାହିଁ, କେହି ବାଧା ଦଉ ନାହାନ୍ତି, କାମ ସୁରୁଖୁରୁରେ ହୋଇ ଯାଉଚି । ରାସ୍ତାକୁ ଯଦି କାହାର ବାଡ଼ ମାଡ଼ି ଆସିଚି, କୋଦାଳ ଦେଇ ଟିକେ ଛେଚି ଦେଲେ ଦାଣ୍ଡ ସଫା ।



ନାଲା ଆମର ସେଟଲମେଣ୍ଟରେ ଅମିନ । ହାତରେ ତାର ଗାର ନକ୍‌ସା, ଗୁନିଆ ଆଉ କମ୍ପାସ । ଅକେଇ ଆଉ ବୁଢ଼ିଆ ଦୁ' ଜଣ ଯାକ ଚେନ୍‌ମ୍ୟାନ୍, ହାତରେ ଚେନ୍ ଧରି

ରେଢ଼ି । କୋଉଠି ଦରକାର ପଡ଼ିଲେ ମାପକରି ନାଳ କହିଦବ, ଏ ଦିଗହିଁ ଚେନ୍ ଧରି ଜାଗା ଦେଖେଇ ଦେବେ । ତା' ପରେ ତ ବାନରସେନା ଖେଦିଯିବେ କୋଦାଳ କି କୋଡ଼ି ଧରି ସାଙ୍ଗେ ସାଙ୍ଗେ ହଣା ହେଇଯିବ ।

ଗୋଲଖା ଘର ଦୁଆର ମୁହଁରେ ଗୋବର ଗଦା, ସିଏ ପୁଣି ରାଜଦାଣ୍ଡରେ । ବାସି ଗୋବର ତା' ଉପରେ ତା' ଉପରେ ଗଦା ଚାଲିଛି, ବର୍ଷାପାଣି କି ଗୋରୁମୂତ ରାସ୍ତା ଉପରଦେଇ ବୋହିଯାଉଛି, ପୋକ ସାଲୁବାଲୁ, ଗନ୍ଧରେ ନାକ ଫାଟିଯାଉଛି । ଲୋକେ ଗଲାବେଳେ ନାକରେ ଲୁଗା ଦେଇ ସେବାଟ ପାରି ହୁଅନ୍ତି ।

ପିଲାଙ୍କର ଶୋଭାଯାତ୍ରା ସେଇଠି ଅଟକି ଗଲା । କିଏ ଏ ଗୋବର ଗଦା ଉଠେଇବ ? ସବୁରି ନାକରେ କନାବଣ୍ଡା, ଆଖିରେ ଘୃଣା ।

ନରିଭାଇର ଆଖିରେ ପଡ଼ିଗଲା, ଗୋଲଆ ମୁରୁକି-ହସା ଦଉଛି, ଆଉ ଯେମିତି ଛୁଗୁଲେଇ କରି କହୁଛି, "ଦାଣ୍ଡ ସଫା କରିବ ? ନାଜନାହିଁ ତୁମକୁ ? ଏଇଠୁ ଯଦି ମେରି ମୁଣ୍ଡେଇ ଘରକୁ ନ ଯାଇଛ, ତା' ହେଲେ ମୋର ନାଁ ନାହିଁ ।"

ଚାରିଆଡ଼କୁ ଅନେଇଲା ସିଏ । ସମସ୍ତେ ଖୁଣ୍ଟ ଭଳିଆ ଠିଆ ହେଇଛନ୍ତି । କାହାରି ହାତ ସିଆଡ଼େ ଯାଉନାହିଁ, କେହି କାହାକୁ ନାହାନ୍ତି, ତା'ର ମୁଣ୍ଡ କଣ କେମିତି ଗୋଲ-ମାଳିଆ ହେଇଗଲା, କାହାର ହାତରୁ ଗୋଟାଏ କୋଡ଼ି ଛଡ଼େଇ ନେଇ ସେ ନିଜେ ଗୋବର ଗଦାକୁ ହାଣିବାରେ

ଲାଗିଲା । "ଆଣରେ ଝୋକେଇ, ବେଳ ହେଇ ଯାଉଚି, ଏଡ଼େ ବଡ଼ ଗଦାକୁ ଝେଙ୍କିବାକୁ ପଡ଼ିବ ଯେ ?"

ଏତକ ପେଇଁ ସମସ୍ତେ ଜଗିହିଁ ବସିଥିଲେ, ତାପରେ ଗାଣ୍ଡୁଆ ଦ'ଗଟା ଥୁଆ ହେଇଗଲା । ତାକୁ ଭର୍ତ୍ତି କରିଦେଲା



ପରେ ପୁଣି ଗାଣ୍ଡୁଆ । ଯେ ସବୁ ବି କଏ କେମିତି ଉଠେଇ ନେଲେ । ଆଉ ମାନେ କୋଡ଼ି ଧରି ମାଡ଼ି ଆସିଲେ । ଘଣ୍ଟା-କରେ ପାହାଡ଼ ପରିକା ଗୋବର ଗଦାଟା ଦାଣ୍ଡ ଉପରୁ ଉଠିଯାଇ ଗୋଲଖାର ଔଳତଳେ ଠିଆ ହେଇଗଲା ।

ଗୋଲଆ ତାପରେ କୁଆଡ଼େଗଲା କେହି ଆଉ ତାକୁ ଦେଖି ନାହାନ୍ତି ।

ଶୁଣିଲଣି, ବଳିଆ କୁଆଡ଼େ ଗୋଟାଏ ଶକ୍ତ ପାଞ୍ଚ ହାତିଆ ଠେଙ୍ଗା ଧରି ଠିଆ ହେଇଚି । ଯିଏ ତା' ବାଡ଼ିରେ ହାତ ଦବ ତାକୁ ସିଏ ସେଇଠି ପାହାରେ ଦବ ।" ମଦନା ଆସି ଖବରଦେଲା ।

"ବଳିଆ ବୃଷାଳିଆ ଦେହ, ହୁଣ୍ଡାଟାଏ । କଥାରେ ତା'ର ନାଁ ମାନଥାନ ଅଛି ନାଁ କାମରେ ଅଛି ବାଗବାଇଣ । ତା' ପାଖକୁ ଜମା ଯିବାନେଇ ।" ଶତ୍ରୁଘ୍ନର ମନରେ ଭୟ ପଶିଗଲାଣି ।

ତାଙ୍କର ସିଂଝୁବାଡ଼ ବି ଦାଣ୍ଡରୁ ଅଧେ ଚଳୁକରି ଦେଇଛି । ଏବେ ସେ ବାଡ଼କୁ ପଦା ନ କଲେ ଆଗକୁ ରାସ୍ତା ସଫା ବନ୍ଦ ।

"ବିଷମ ସମସ୍ୟା ଏବେ ପଡ଼ିଲା । ଏ ଠାବରେ ଯିଏ ଯିବ ହୁଣ୍ଡା ପାଖେ ପଡ଼ିଯିବ ପ୍ରବରେ ।" ତୀରୁଭାଇ ଯାତ୍ରା ଠାଣିରେ ଗୀତଗାଇ ପିଲାମାନଙ୍କୁ ଉପଦେଇ ଦେଲେ । ଶତ୍ରୁଘ୍ନର ଆତଙ୍କ କିନ୍ତୁ ଏ ପଦ୍ମଚାଳାରେ ଭାଙ୍ଗିଲା ନାହିଁ ।

ନାଲା ନରଭାଇ କାନ ପାଖରେ ଫୁସ୍ ଫୁସ୍ କରି କହି-ଦେଲା, "ଆମେ ଯଦି ସାଧ ମଉସାକୁ କହନ୍ତେ, ସେଇ ଏକା ତାକୁ ମନେଇ ପାରନ୍ତେ । ତାଙ୍କୁ ତାର ପ୍ରାଣେ ଭୟ ।"

ଥରେ ଇଲମ୍ ପାଇଗଲା ପରେ, ଅର୍ଜୁନ ବି ଏମିତି କର୍ଣ୍ଣଙ୍କୁ ବଧ କରି ଦେଇଥିଲେ, ଆଉ ଇଏ ବା କିବା କଥା ?

ସାଧୁ ମଉସା ଆସିଲେ, ଭମରା ବି ଫଣାକୁ ଲୁଚେଇ ଗାତରେ ପଶିଗଲା । ବାଘର ବି ପୁଣି ସାଗକୁ ଡର ଅଛି । ନାଲା ତାର ମାପ ସାରି ଦେଖେଇ ଦେଲା ପରେ ସିଂଝୁବାଡ କଟା ବି ହୋଇଗଲା ।

ସଫେଇ ଦଳ ଆଗକୁ ମାଡ଼ି ଚାଲିଲେ । ଏଥର ଖୁଣ୍ଟ ଉପାଡ଼ିବା ଆଉ କଷ୍ଟ ହେଲା ନେଇ ।

"ଆପଣା ଲଜ, ତାପରେ ପେଟରକୁ ଖାଇଲା । ଯିଏ ସବୁ ଖୁଣ୍ଟ ପୋତିଥିଲେ ଆପେ ଆପେ ଉପାଡ଼ି ନେଲେ । ଗୋବର ଗଦାରେ ପିଲାମାନେ ହାଣ୍ଡି ମାରିଲା ସାଙ୍ଗେ ସାଙ୍ଗେ ମାଲିକମାନେ ହାତ ନଗେଇ ଦେଲେ ।

ଏମିତି ବିନା ବାଧାରେ ସେଦିନ କାମ ହେଇଗଲା । ଗାଁ ଭାଣ୍ଡର ଅଧେ ସରିକି ସଫା ହେଇଚାଲା ସେଇ ଦିନକରେ ।

ତା' ପରଦିନ ବାଲାଦାସଙ୍କ ଘର ପାଖରେ ସମସ୍ତେ ଅଟକି ଗଲେ । ତାଙ୍କର ପକ୍କାପିଣ୍ଡା ରାସ୍ତା ଉପରକୁ ମାଡ଼ି ଆସିଚି । କିଏ ପିଣ୍ଡାରେ ତାଙ୍କର ହାତ ଦବ । ରଘୁଆ, ଦାସଙ୍କୁ ଡାକିବାପାଇଁ ତାଙ୍କ ଘରକୁ ଗଲା, ଫେରିଆସି ଖବର ଦେଲା ଯେ ସେ ଘରେ ନାହାନ୍ତି । ସକାଳୁ ବିଲଆଡେ ଯାଇଚନ୍ତି ।

ନିଳା ତାର କମ୍ପାସ ପକାଇ ନକ୍ସା ଦେଖି ମାପି ଦେଲା । ଚେନ୍ ଟାଣି ବୁଝିଆ ପାଟି କରିଦେଲା, "ଆରେ ବୁଢ଼ା ଅଢ଼େଇହାତ ଜାଗା ମାଡ଼ିବସିଚିରେ ।"

"ଅଢ଼େଇ ହାତ ? ଶତ୍ରୁଘ୍ନର ଆଖି ଉପରକୁ ଗଲା, "ତା ମାନେ ତାଙ୍କ ପିଣ୍ଡାର ଅଧେରୁ ବେଶୀଥାନ ଗାଁ ଲୋକଙ୍କର ?

ପରଲୁଗା ପିନ୍ଧି ଯାତକୁ ଯାଉନା, ପଚାରିଲେ ମୁଣ୍ଡ ଟୁଙ୍ଗାରୁ ଥାଉ ।" ଅ ନକ ଆଗକୁ ବାହାରି ଆସିଲା ।

ତାରୁହାଇ ବି ତାଙ୍କ ଯାତ୍ରା ଗୀତରୁ ପଦେ ଛାଡ଼ି-ଦେଲା, "ଆସ କିଏସେ ଯିବରେ ହାଣି, ଦାସପର ପିଣ୍ଡା ।"

"ଦେଖାଯାଉ ଏଥର ବଲେଇ ବେକରେ ଘଣ୍ଟି ବାନ୍ଧିବ କିଏ ?" ସପନା ପଛରୁ ଥାଇ ଉସକେଇ ଦେଲା, "ଆସରେ କିଏସେ ତାଙ୍କ ପିଣ୍ଡାକୁ ହାଣିବ ?"

ନରହରି ସେତେବେଳକୁ ଆସି ପହଞ୍ଚିଲେଣି । ସବୁ ଶୁଣିସାରି ସପନାକୁ କହିଲେ, "ଯିବୁଟିରେ ଦାସଙ୍କୁ ଡାକି-ଆଣିବୁ, ସିଏ ଠିଆହେଲେ କାମଟା ଟିକେ ସହଜ ହେଇ-ଯିବ ।"

"ସେ କଥା କଣ ଆଉ ବାକିଅଛି ?" ସପନା ଉତ୍ତର ଦେଲା, "ଆମେ ଆଗରୁ ବୁଝି ସାରିଲୁଣି, ସିଏ ଘରେ ନାହାନ୍ତି ।"

"ଦାସେ ନାହାନ୍ତି ନା, ଦାସେ କହିଲେ ଦାସେ ନାହାନ୍ତି ।" ଗୁରିଆ ହସି ହସି କହିଲା ।



କନା ଆଉ ସମ୍ଭାଳି ପାରିଲା ନାହିଁ, ସାବଳଟାଏ ଧରି ଉଠିଗଲା ତାଙ୍କ ପିଣ୍ଡା ଉପରକୁ । କନା ଯୋଉ ଦାଗ

ଦେଇଥିଲା, ସେଇଠୁ ପିଣ୍ଡା ତଡ଼ା ଆରମ୍ଭ ହେଲା । ସାଙ୍ଗେ ସାଙ୍ଗେ ତା' ସାଙ୍ଗରେ ଆଉ କେତେଜଣ ମିଶିଗଲେ ।

ଏତକବେଳେ ଦାସେ କୁଆଡେ ଥିଲେ କେଜାଣି ? ଧାଇଁ ଆସିଲେ, କଥାନାହିଁ, ବାର୍ତ୍ତାନାହିଁ ନୀନାକୁ ଠୋ କରି ଚାପୁଡାଏ ପକାଇଲେ । ନୀନା ଶବର୍ ସେଇଠି ପଡ଼ି ବେହୋସ ।

ସିଏ ଆଉ ଯା'ନ୍ତି କୁଆଡ଼େ ? ଗାଁର ଆଉ ଲୋକେ ତାଙ୍କୁ ଘେରିଗଲେ । ପିଲାମାନେ ତ ତାଙ୍କୁ ଝିଙ୍କା ଓଟରା କରି ଲୁଗାପଟା ଚିରିଦେଲେ । ପିଣ୍ଡା ଉପରୁ ତଳକୁ ଘୋଷାରି ଆଣିଲେ ।

ଗାଁଲୋକ ପାଟିତୁଣ୍ଡ ହୋ ହଲା । କିଏ କଣ କହୁଚି କାହାକୁ କହୁଚି କେହି ଶୁଣୁନି ।

ଏଇଠି ମୁରବି ତୁଲ୍ୟ ଲୋକମାନେ ପିଲାମାନଙ୍କୁ ଧରି ଥୟକଲେ । ତାଙ୍କ ମେଳରୁ ବାଲାଦାସଙ୍କୁ ମୁକୁ-ଳେଇଲେ । ସେତେବେଳକୁ ସିଏ ପୁରା ଗୋଟାପଣେ ଥରୁଚନ୍ତି ।

"ବୁଢ଼ାଟାଏ ହେଲଣି ଆସି, ଅକଲ ତମର ଟିକିଏ ବି ହେଲାନାହିଁ ବାଲକୃଷ୍ଣ ।" ଦିବାକର ବାବୁ ତଥାରୁ କହିଲେ ତାଙ୍କୁ, "କଥାନାହିଁ ବାର୍ତ୍ତାନାହିଁ ଶୁଖିଲାଟାରେ ପିଲାଟା ଉପରେ ହାତ ଉଠେଇ ଦେଲ ?"

"ଏବେ ସମସ୍ତେ ମିଶି ଯଦି ଛେଚିବେ କିଏ ଆସି ତମ ପିଠିରେ ପଡ଼ିବ ? କାଶିବାବୁ ତାଙ୍କ ଦୋଷ ବାଛିଲେ ।

ଜଗୁଆ ପୁଣି ରାଗରେ ଲାଲ ପଡ଼ିଯାଇଥିଲା, "ଆଜି ଏ ଘରକୁ ଆମେ ମାଟିରେ ମିଶେଇ ଦବୁ । କିଏ ତାଙ୍କ ପିଠିରେ ପଡ଼ିବ ପଡୁ ।"

"ବାବୁପରା ଘରେ ନଥିଲେ ଆସିଲେ କୁଆଡୁ ? ଗୁରିଆ ପାଟିରେ ବାଡ଼ବତା ନାହିଁ, "ଥିବଥେଲେ କବାଟ କଣରେ ଲୁଟିଗଲେ ଆମେ ତାଙ୍କୁ ଛାଡ଼ିଦବୁ ପରା, ମରଣ କାଳେ କିଦା ଗଲେ ଯମକି ଛାଡ଼ିଦବ ଭଲେ ।

"ସର୍ବସାଧାରଣଙ୍କର ସମ୍ପତ୍ତିକୁ ଚଳୁକରି ଏ ଫେଚ-କାମି" ପୁନିଆ କହିପକେଇଲା ।

"ଛାଡ଼, ଛାଡ଼ ପିଲାଏ କଣ ମିଳିବ ସେଥିରୁ" ଦିବାକର୍ ବାବୁ ବୁଝେଇବାକୁ ଚେଷ୍ଟାକଲେ । "ତାସେ ଭୁଲ କରିଚନ୍ତି, ତମେ ସବୁ ତାଙ୍କୁ କ୍ଷମା କରିଦିଅ । ତାଙ୍କ ପାଇଁ ମୁଁ ତମର ହାତ ଧରୁଚି ?"

"ନାଁ, ଆମେ ତାଙ୍କୁ ଯମା ଛାଡ଼ିବୁନି । ସମସ୍ତଙ୍କ ଆଗରେ ସିଏ ଭୁଲ ମାଗନ୍ତୁ । ସନିଆର ଏକା ଜିଦ୍ ସମସ୍ତଙ୍କର ଏ ଗୋଡ଼ ପାଖରେ ନଇଁ ନଗଲେ, ତାଙ୍କର ଆଉ ଗତି ଅଛି ? ନାନାର ହାତଧରି ସେ କହି ପକେଇଲେ, "ମୁଁ ତ ତୋର ବାପ ଭଳିଆ, ଏଇ କଥାକୁ ନେଇ ଏଇ ଅଭିମାନ ?" ତାପରେ ପିଲାମାନେ ଖାଲି ଆନନ୍ଦରେ ଡେଇଁଲେ । ନାନା ସାଙ୍ଗେ ସାଙ୍ଗେ ହିରୋ । ତାକୁ କାନ୍ଧରେ ବସେଇ ଦେ, ବୁଲା, କିଏ ଦେଖିବ ଏ ନାଟ ।

ଏ ପର୍ଯ୍ୟନ୍ତ ସମସ୍ତଙ୍କ ପଛରେ ସେ ମୁହଁ ଶୁଖେଇ ବସିଥିଲା । ଏଇ ଗୋଟାଏ ଗପୁଡ଼ାଖାଇ ସମସ୍ତଙ୍କର ଲଡ଼ର

ହେଇଗଲା । ଛୋଟା ପାଇକ ଏମିତ ପଛରେ ଥାଏ, ସୁବିଧା ପାଇଲେ ସେଇ ପୁଣି ଆଗେଇ ପଡ଼େ ।

ଏ ଗଣ୍ଡଗୋଳ ଭିତରେ କାମଟିକେ ଧିମେଇ ଯାଇ-ଥିଲା । ପୁଣିଥରେ ପିଲାମାନେ ନୂଆ ଉତ୍ସାହରେ ଲାଗି-ପଡ଼ିଲେ । ଯାହା ଟିକିଏ ଅଧେ ଗୋଳମାଳ ହେଉଥିଲା, ଏଥର ସବୁ ସୁରୁଖୁରୁରେ ହେଇଗଲା । ସେଇଦିନ ସରିବା ବେଳକୁ କାମ ସାତପଣ ହେଇଯାଇଚି । ଗାଁ ଦାଣ୍ଡର ତିନି ଭାଗରୁ ବେଶି ସଫା ହେଇଗଲାଣି । ଆଉ ତାପର ଦିନ ପୁରା ଗାଁ ଦାଣ୍ଡ ଏ ମୁଣ୍ଡରୁ ସେ ମୁଣ୍ଡ ସଫା ।

'କାମଟା ଯାହେଉ ଭଲରେ ଭଲରେ ସରିଗଲା, 'ଗୁରିଆ ଶାନ୍ତିରେ ଯେମିତି ନିଶ୍ୱାସ ମାରିଲା, 'କାଲି ଦେଖିଲନା ସବୁ କେମିତି ସହଜରେ ହେଇଗଲା । ମୋରିତ ଜମା ବିଶ୍ୱାସ ନଥିଲା । ଏବେ ଲାଗୁଚି ଏଇଟା ଏମିତି କିଛି ବଡ଼ କାମ ନୁହେଁ । ''ଶତ୍ରୁଘ୍ନ ଖାଲି ଖିଲ ଖିଲ ହସ ।

''ବାଲାଦାସଙ୍କ ପିଣ୍ଡାକଟାପରେ କିଏ ଆଉ ଗଣ୍ଡ-ଗୋଳ କରିବ ? ବରିମାଡ଼ ଦେଖିଚ କୋଲଥ ଚେପା…।'' ଜଳା ବଡ଼ ଯୋରରେ କହି ଆସୁଥିଲା ।

''ଆମ ମନ ମିଳିଗଲେ ହବନାଇ ଏମିତି କିଛି କାମ ଅଛି ?'' ଜରିଆଇ କଥାକୁ ସାରିଦବାକୁ ଚାହୁଁଥିଲେ । ''ପାଞ୍ଚମନ ଆଉ ପଚିଶ ପ୍ରକୃତିକୁ ଏକାଠି କରିପାରିଲେ,

ହିମାଳୟକୁ ପାହାଡ଼କୁ ବି ଟଳେଇ ଦେଇ ହବ, ଆଉ ଇଏଟା କିବା କଥା ?

"ଯାହା କହ ନୀନା ସେ ଦିନ ଯୋଉ ବ୍ରହ୍ମ ଗଛପୁଡାଟା ଖାଇ ପଡିଗଲା, ସେଇଥିରେତ ଆମେ ସବୁ ସୁନାପୁଅ ହେଇ ଗଲୁ । ଗୁରୁଆ ଆନନ୍ଦରେ କୁରୁଳି ଉଠୁଥିଲେ । ଦେଖିଲ ନେଇ ଛାପରେ କେମିତି ସମସ୍ତେ ଆମଆଡ଼କୁ ଢଳି ପଡ଼ିଲେ ।

"ତମେ ଯେତେବେଳେ ଏମିତି ଭଲକାମ କରିବ ସବୁଥିରେ ଲୋକେ ତୁମକୁ ସାହାଯ୍ୟ କରିବେ, କାନ୍ଧ ଲଗେଇ ଦେବେ, ଏ ବିଶ୍ୱାସ ମୋର ଅଛି । "ନରିଆଇ ଅନ୍ୟମାନଙ୍କୁ ସାହାସ ଦେଉଥିଲି ।

ସବୁକାମ ଏମିତି ଆରମ୍ଭରୁ ପାହାଡ଼ପରି ଦିଶିଲାଗେ । କରିବାକୁ କଷ୍ଟ ବୋଲି ସମସ୍ତେ କହନ୍ତି । ଆଉଥରେ ସରିଗଲେ ସମସ୍ତେ ଭାବନ୍ତି ସତରେ ଏ କାମଟା କେତେ ସହଜ ?

ଭଗବତପରି କହିଲି, "ଧନକାର୍ପଣ୍ୟ ଦେବା ଫଳେ କିବା ଅସାଧ୍ୟ ମହିଛଲେ ।"

———

# ଦେଉଳ ତୋଳିଲେ ନାଁ ପଡ଼େ

ଦିବାକର ବାବୁ ଖୁବ୍ ଖୁସି । ଏତେ ଦିନରେ ପିଲା-ମାନେ । ଗୋଟାଏ ମନେରଖିଲା ପରି କାମକରି ଦେଖେଇ ଦେଲେ ।

“ବୁଝିଲ ଦାସେ, ଛୋଟସାପର ବିଷ ଟାଣ । ପିଲାଙ୍କର କାରସାଦି ଦେଖିଲତ ? ଆମେ ଯାହା ଏତେ ଦିନ ଧରି ପାରୁନଥିଲେ ସେମାନେ ତାଙ୍କର ଟିକି ଟିକି ହାତରେ କରିଦେଲେ ।” କାଶିବାବୁଙ୍କୁ ସିଏ ବୁଝେଇବାରେ ଲାଗିଥିଲେ ।

“ଆମେ ସବୁତ ସ୍ୱାର୍ଥ, ନିଜକଥା ଛଡ଼ା ଆଉ କିଛି ମନରେ ନ ଥାଏ । ଏ ପରକାମ କିଏ କରିବ ?” ଅଗଣି ବେହେରା ହାତ ମଳି ମଳି କଡ଼ରୁ କହି ଉଠିଲା, “ପିଲାଏ ସମସ୍ତଙ୍କର, ସେଥିପାଇଁ ଏ କାମ ଏମିତି ହେଇ ଗଲାନା ?”

“କଣ ରଥେ, ତମର ଗୁହାଳଟା ଏଥିରେ ଗଲା ?” କାଶିବାବୁ ଟିକେ ପରିହାସରେ କହିଦେଲେ ।

“ମୋର କଣ ଏକା ଯାଇଚି ? ଗାଁ ଦାଣ୍ଡକୁ ଯାହାର ଯାହା ମାଡ଼ି ଯାଇଥିଲା ପିଲାଏ ସମସ୍ତଙ୍କର ଉଠେଇ ଦେଇଚନ୍ତି । ସେଥିପାଇଁ ମୋ ମନରେ ଦୁଃଖ ନାହିଁ ।

ଏବେ ଡାଣ୍ଡଟା ଯେମିତି ସଫା ହୋଇ ଯାଇଚି । ରାତି ଅଧରେ ଜଣେ ଏକା ନିର୍ଭୟରେ ଚାଲିଯାଇ ପାରିବ, ଇଏ



କଣ କମ୍ କଥା ?" ଦେଥେ ପିଲାଙ୍କ ଉପରେ ରାଗି ପାରୁ ନ ଥିଲେ ।

"ତମ ସମସ୍ତଙ୍କର ମନଜାଣି ମୁଁ ପିଲାଙ୍କୁ ଗୋଟିଏ ହ୍ୱେକିପାଇଁ ଡାକିବ ଭାବୁଚି ।" ଦିବାକର ବାବୁ ଗୋଟାଏ ନୂଆ ଖବର ଶୁଣେଇଲେ, "ତମର ଏଥିରେ ମତ କଣ ?"

"ଏକଥା ଆଉ ପଚାରିବାକୁ ଅଛି ?" ବାଳାଦାସ ଉପରେ ପଡ଼ି କହିଲେ, "ହ୍ୱେକିଟ ମୋର ଦବା କଥା । ବଚରା ନିର୍ଦ୍ଦୋଷ ପିଲାଙ୍କୁ ମୁଁ ଯାହା ହାତ ଉଠେଇ ଦେଲି ସିଏଟ ତା ପାଇଁ କିଛି କରୁ ନ ଥେଲି ।"

"ସେଇ ହେଲା ନେଇ, ତମେ ସେଠ ପିଲାଙ୍କ ପିଠିରେ ହାତ ମାରିଦେଲ । ସିଏ କଣ ସେ କଥା ବୁଝିବେ ନାହିଁ ।" କାଶିବାବୁ ଦାସଙ୍କୁ ବୁଝେଇବାରେ ଲାଗିଥିଲେ ।

"ତା ହେଲେ କେବେକୁ ବୈଠକଟା ରଖିବା ?" ଦିବାକରବାବୁ ପୁଣି ଥରେ ସମସ୍ତଙ୍କୁ ପଚାରିଦେଲେ ।

"ଆଗତ ମଙ୍ଗଳବାରକୁ ଦଶହରା ଡିଆସି ପଡ଼ୁଚି । ଦେବୀ ସେତେବେଳକୁ ପାଣିରେ ଘଡ଼ି ସାରିଥିବେ । ସେଇ ଦିନଟା କେମିତି ହୁଅନ୍ତା" ରଥେ ପ୍ରସ୍ତାବଟାଏ ଦେଲେ ।

"ମୁଁ ବି ସେଇଆ ଭାବୁଥିଲି । କାଲିଠେଉଁ ତ ସମସ୍ତେ ପଜାରେ ମାତିବେ, କିଏ କୋଉଠି ଖୋଜିଲେ ମିଳିବେ ନେଇଁ । ବିସର୍ଜନ ପରେ ଏ ଝମେଲା ସରିଯିବ । ତାପରେ ବୈଠକି । 'କାଶିବାବୁ ରଥଙ୍କ କଥାରେ ନିଜ କଥାକୁ ମିଶେଇ ଦେଲେ ।" ଏପରି କାମର ଯେତେ ମଜଲା ସେଇ ବୈଠକିରେ ସବୁ ଛିଡ଼େଇବେ ।"

"ସେଇଆ ହଉ, ଆମେ ସମସ୍ତେ ଏକାଠି ପଥର ପକେଇ ପିଲାଙ୍କ ପେଠି ଥାଏଁଉଡ଼େଇ ଦବା ।" ସୁରବାବୁ ନିଜର ଚଷମାଟେକ ସମସ୍ତଙ୍କୁ ଚାହିଁଲେ ତାଙ୍କ କଥା କହିସାରି । ଯାହା କହ ଏଥର ସେମାନେ ଆମକୁ ସବୁ ବୁଦ୍ଧି ଶିଖେଇ ଦେଲେ ।"

"କଥାଟାକୁ ଏଇଠି ସାରିଦେଲେତ ଚଳିବନେଇ ।" ଦିବାକର ବାବୁଙ୍କର କଥା ଶୁଣି ସମସ୍ତେ ତାଙ୍କ ଆଡ଼କୁ ଠେକୁଆ ପରି କାନଟେକି ଅନେଇଲେ, "ଏ ପର୍ଯ୍ୟନ୍ତ ପାଉଁଶ ତଳେ ନିଆଁ ରହିଥିଲା, ଏଇଠି ଜଳିବା ଆରମ୍ଭ ହେଇଚି, ତାକୁ ଠିକ୍ ବନ୍ଧିଦେଲେ ସିଏ କେତେ କଣ ଏମିତି କାମ କରିଦବ ।"

"କଣ ଯେ ଆପଣ ବେଳେ ବେଳେ କହିପକାନ୍ତି ?" ଅନ୍ୟମାନେ ମୁହଁ ଖୋଲିବା ଆଗରୁ କାଶିବାବୁ ନକେ ନ ବୁଝିବା କଥା ପରିଷ୍କାର କରିଦେଲେ, 'ପାଉଁଶ କାଇଁ, ସେଥିରେ ନିଆଁ କୋଉଠି ଥିଲା । ପୁଣି ତାକୁ ବଞ୍ଚିଲା କିଏ, ସିଏ ପୁଣି ଜଳିଲା କେମିତି ?' •

'ଏ ପର୍ଯ୍ୟନ୍ତ ପିଲାମାନେ ତାସଖେଳ, ପରଗୋଇ ଖେଳ ସମୟ କାଟୁଥିଲେ ।' ଦେବାକରବାବୁ ନିଜ କଥାକୁ ପରିଷ୍କାର କରିଦେଲେ, 'ଏଇଠି ସେମାନେ ଏକାଠି ହୋଇ, ଯାହା ଆମେ ପାରୁ ନ ଥିଲୁ, ଏତେଦିନ ଧରି ପଡ଼ିଥିବା ମଇଳା ଅଳିଆଗଦା ଦାଣ୍ଡକୁ ସଫା କରିଦେଲେ । ତାଙ୍କୁ ଆମେ ଯଦି କାମରେ ଲଗେଇ ପାରିବା ଏମିତି ଯେତେ ସମସ୍ୟା ଆମର ଅଛି ସବୁ ସମାଧାନ ହୋଇଯିବ ।'

'ହଁ, ତା ନୁହେଁ ଆଉ କଣ ?' ଯୋଡ଼ାକୁ ପରି ଘୋଡ଼ା ସରି ନୁହେଁ ।' ରଥେ ଏ ପର୍ଯ୍ୟନ୍ତ କଥାକୁ ଚିଇ ଯାଉଥିଲେ, ଏଇଠି ମୁହଁ ଖୋଲିଲେ ।

'ତା ବି ସତ । ଗାଁର ପୋଖରୀରେ ଏତେ ପଙ୍କ ଆଉ ଦଳ ଭର୍ତ୍ତି ହୋଇଚି ତାକୁତ ଏମିତି ସଫା କରିଯାଇ ପାରନ୍ତା ।' କାଶିବାବୁ ପ୍ରସ୍ତାବ ଦେଲେ ।

'ସେଇ କଥାତ ମୁଁ କହୁଚି । ଏ ଯୋଉ ନିଆଁ ଜଳୁଚି, ତାକୁ ଏମିତି ଜଳେଇ ରଖିବା କାମ ଆମର । ଦେବାକର

ବାବୁ କହୁଥିଲେ 'ତେବେ ସବୁକାମ ତାଙ୍କ ମୁଣ୍ଡ ଉପରେ ନଦଦେଇ ଆମେ ଆରାମ କଲେ କଣ ହେବ ? ଧୀରେ ସୁସ୍ଥେ କରି ବସିଲେ ଗୋଟିଏ ପରେ ଗୋଟିଏ କାମ ଏମିତି ଶେଷ ହେଇଯିବ ।'

'ହଁ ତା ନୁହେଁ ଆଉ କଣ ? କଥାରେ ପରା ଅଛି ଧୀରପାଣି ପଥର କାଟେ । ରାମରଥେ କଥା ସାରିବାକୁ ଚାହୁଁଥିଲେ, 'ଏକଥାରେ ସବୁ ଗିଳଦବାକୁ ଚାହିଁଲେ କଣ ହବ ? ଏଥର ରହିଲା ଏ ଭୋଜିର ବ୍ୟବସ୍ଥା କିଏ କରିବ, କେମିତି ହବ ?'



ଅଗଣି ବେହେରା ତାଙ୍କ ପାଟିରୁ କଥା ଛଡ଼େଇ ନେଲେ, 'କଅଁ, ଆମେ କଣ ଅଲସୁଆ ହେଇଗଲୁଣି ଯେ ଭୋଜିଟାଏ କରିପାରିବୁ ନେଇ । ଫିସନ ପରା ଏମିତି ପାଞ୍ଚଟା ଯନ୍ତାଳ କରୁଥେଲୁ ।'

'ହେଲା ତାହେଲେ ବେହେରାଏ ତମେ ଏ ଥର ନିଅ ।'' ଦିବାକରବାବୁ କଥା ଶେଷକଲେ, ''ଯେତେବେଳେ ଯାହାଦରକାର ସବୁ ତମକୁ ଦିଆଯିବ ।''

''ତାହେଲେ ଦଶରା ତଆସ ମଙ୍ଗଳବାର ଦିନ ଯନ୍ତାଳ ପକ୍କା ''ଅଗଣି ବେହେରାଏ ଘୋଷଣା କଲେ'। 'ସେଥିରେ ଗାଁରୁ ଛୋଟ ବଡ଼ ସମସ୍ତେ ରହିବେ ପିଲାମାନଙ୍କୁ ଆଶିର୍ବାଦ ଦବାକୁ ।

